# ଜଗନ୍ନାଥ-
# ପ୍ରଶାନ୍ତି-ପଞ୍ଚକମ୍



ଲେଖକ

ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା

# ଜଗନ୍ନାଥ-ପ୍ରଶସ୍ତି-ପଞ୍ଚକମ୍

ଲେଖକ

ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା

ପୁସ୍ତକର ନାମ— ଜଗନ୍ନାଥ-ପ୍ରଶାନ୍ତ-ପଞ୍ଚକମ୍

ଲେଖକ— ପ୍ରୋଫେସର୍ ଗୌରୀକୁମାର ବ୍ରହ୍ମା
ଭୁବନେଶ୍ୱର-୨

ପ୍ରକାଶିକା— ଶ୍ରୀମତୀ କବିତା ମିଶ୍ର
ବୁଗୁଡ଼ା (ଗଞ୍ଜାମ)

ପ୍ରଥମ ସଂସ୍କରଣ— ୧୯୯୨ ଜାନୁଆରୀ

ମୁଦ୍ରଣ— ବୁଦ୍ଧେଶ୍ୱରୀ ପ୍ରେସ୍,
କଟକ ରୋଡ୍, ଭୁବନେଶ୍ୱର-୬

ମୂଲ୍ୟ— ଟ୨-୦୦ (ଦୁଇଟଙ୍କା ମାତ୍ର)

# ଉପହାର

କବି, ପଣ୍ଡିତ ଓ ସାଧକମାନଙ୍କର ଗୁଣଗ୍ରହଣକୌତୁକୀ-ଆଜନ୍ମକାଳ ଗ୍ରାମରେ ଜୀବନଯାପନ କରୁଥିଲେ ମଧ୍ୟ, ବହୁମୁଖୀ ସଂସ୍କୃତସାହିତ୍ୟରେ ପରମଅବଗାହୀ, ସିଂହଗର୍ଜନକାରୀ ପ୍ରଗଲ୍‌ଭ-ବକ୍ତା, ତୁଳନାତ୍ମକ ସାହିତ୍ୟ ଅଧ୍ୟୟନର ବରେଣ୍ୟ ଉପାସକ, ସଂସ୍କୃତରେ ଆଶୁକବି ଓ ପ୍ରାବନ୍ଧିକ, ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ-ମହାପ୍ରଭୁଙ୍କର ଏକନିଷ୍ଠ ଚରଣସେବକ, ସମ୍ବଲପୁର ଜିଲ୍ଲାର ପଶ୍ଚିମ ସୀମାନ୍ତ 'ପଦ୍ମପୁର' ନିବାସୀ **ଶ୍ରୀଯୁକ୍ତ ଗଙ୍ଗାଧର ଗୁରୁଙ୍କର** କରକମଳରେ ଏହି ଜଗନ୍ନାଥ-ପ୍ରଶସ୍ତି-ପଞ୍ଚକମ୍ ଅର୍ପିତ ହେଲା ।

**ଗୌରୀକୁମାର ବ୍ରହ୍ମା**

# ଦୁଇପଦ

ଗତ ୧୯୯୧ ଅଗଷ୍ଟ ମାସରେ ହାଇଦେରାବାଦ୍ ମହାନଗରୀସ୍ଥିତ ସୁବିଖ୍ୟାତ 'ସରୋଜିନୀ ଆଖି-ଡାକ୍ତରଖାନା'ରେ ମୋର ଆଖି ଚିକିତ୍ସା ପାଇଁ ଯାଇଥିଲି । ଭାରତ ବିଖ୍ୟାତ ଚକ୍ଷୁ ଚିକିତ୍ସା ବିଶାରଦ ଡାକ୍ତର ରାଙ୍ଗାରେଡ୍ଡି ଯେପରି ଅବର୍ଣ୍ଣନୀୟ ଦକ୍ଷତା ଓ କୌଶଳରେ ମୋ ଆଖିର ପଟଳ ଉଠାଇଦେଲେ, ତାହା ମତେ ବିସ୍ମୟରେ ଅଭିଭୂତ କରିଦେଇଥିଲା । ସେହି ଅବସରରେ ସେଠାର ବରିଷ୍ଠ ଆଇ.ଏ.ଏସ୍. ଅଫିସର ଶ୍ରୀଯୁକ୍ତ ଯତୀଶ ଚନ୍ଦ୍ର ମହାନ୍ତିଙ୍କ ସାହାଯ୍ୟ ଓ ସହଯୋଗ ଅବିସ୍ମରଣୀୟ ।

ଅସ୍ତ୍ରୋପଚାରର ପୂର୍ବଦିନ, ଭୀଷଣ ଯନ୍ତ୍ରଣାର ଆଶଙ୍କାରେ ମୁଁ ଜଗନ୍ନାଥଙ୍କୁ ଭାବ-ବିହ୍ୱଳ ହୋଇ ଚିନ୍ତା କରୁଥିଲି ଏବଂ ଡାକ୍ତରଖାନାରେ ଭର୍ତ୍ତି ହେବାପରେ (ଏହି) ପାଞ୍ଚୋଟି ଶ୍ଳୋକ ଲେଖିଥିଲି । ଆଶ୍ଚର୍ଯ୍ୟର କଥା, ପାଞ୍ଚ ମିନିଟ୍ ଭିତରେ, ସ୍ୱପ୍ନପରି, ମୋର ଅପରେଶନ୍ ଶେଷ ହୋଇଗଲା । ଏହା କେବଳ ଜଗନ୍ନାଥଙ୍କ କରୁଣା ବୋଲି ଅନୁଭବ କଲି ।

ଏବେ ମୋର ବନ୍ଧୁ ଶ୍ରୀଯୁକ୍ତ ଗଙ୍ଗାଧର ଗୁରୁଙ୍କୁ ସେହି ଶ୍ଳୋକ ପଞ୍ଚକ ଉପହାର ସ୍ୱରୂପ ଅର୍ପଣ କଲି । ଗତ ପଚାଶ ବର୍ଷଧରି ମୋର ଶୁଭ ସମ୍ବାଦ ପାଇଲା ମାତ୍ରେ ମତେ ସେ ସଂସ୍କୃତରେ (ଅଧିକଭାଗ ଶ୍ଳୋକରେ) ସମ୍ବର୍ଦ୍ଧନା ଜଣାଇଛନ୍ତି ଓ ମୋର ଦୁଃଖବେଳେ ଆଶା-ଆଶ୍ୱାସନାର ବାଣୀ ପତ୍ରମାଧ୍ୟମରେ ଶୁଣାଇଛନ୍ତି । ତାଙ୍କର ଶତାଧିକ ସଂସ୍କୃତ ପତ୍ର ମୁଁ ରଖିଛି । ମୋ ଦୁଃଖସମୟର ଏହି 'ପଞ୍ଚକ'ଟିକୁ ତାଙ୍କୁ ଅର୍ପଣ କରିବାରେ ମୋର ଆନନ୍ଦର ସୀମା ନାହିଁ । ବ୍ୟାପକ କୃତଘ୍ନତାର ସାମାଜିକ ବଳୟଭିତରେ ଥାଇ ମଧ୍ୟ, ମୁଁ ଏହା କରିପାରିଛି ବୋଲି ଆନନ୍ଦ ଅନୁଭବ କରୁଛି ।

। ଇତି ।

**ଲେଖକ**

# ଜଗନ୍ନାଥ-ପ୍ରଶାନ୍ତ-ପଞ୍ଚକମ୍

ଯଦା ଦେହେ ରୋଗା ମନସି ପରିତାପୋ
ଗୁରୁତରଃ-
ଗୃହେ ଭାର୍ଯ୍ୟା କ୍ରୁଦ୍ଧା ବନସ୍ଥ-ଗୁଣ-ହୀନାଃ
ସୁତ-ସୁତାଃ ।
କୁଟୁମ୍ବେ ବୈରତ୍ୱଂ ପରମ-ବିମୁଖା
ବାନ୍ଧବ-ଜନାଃ
ଜଗନ୍ନାଥଂ ଶାନ୍ତଂ ନବଜଳଦକାନ୍ତଂ
ସ୍ମର ତଦା ॥୧॥

ଅର୍ଥ— (ହେ ପ୍ରିୟ ପାଠକେ !) ଯେତେବେଳେ ଆପଣଙ୍କ ଦେହ ରୋଗାକ୍ରାନ୍ତ ହେବ, ମନରେ ଗୁରୁତର ଦୁଃଖ ଜାତହେବ, ଘରେ ନିଜର ଭାର୍ଯ୍ୟା କ୍ରୋଧ ପ୍ରକାଶ କରିବେ କିମ୍ବା ପୁଅଝିଅମାନେ ଅବାଧ୍ୟ ହୋଇ ଉଠିବେ, କୁଟୁମ୍ବ ମଧ୍ୟରେ ତୁମ (ନିଜ) ପ୍ରତି ଅଶ୍ରଦ୍ଧାଭାବ ପ୍ରକାଶ ପାଇବ ଏବଂ ଯେତେବେଳେ ତୁମେ ଜାଣିବ ଯେ, ବନ୍ଧୁବାନ୍ଧବମାନେ ତୁମପ୍ରତି ପ୍ରବଳ ବିରକ୍ତ-ଭାବ ପ୍ରକାଶ କରୁଅଛନ୍ତି, ସେତେବେଳେ ଅତି ପ୍ରଶାନ୍ତ ଏବଂ ନୂଆମେଘର କାନ୍ତିପରି କାନ୍ତିଯୁକ୍ତ ଜଗନ୍ନାଥଙ୍କୁ ଧ୍ୟାନକର । (ଶାନ୍ତିର ଉପାୟ ସେ ବତାଇ ଦେବେ)

ଯଦା କର୍ମକ୍ଷେତ୍ରେ ପ୍ରସରତି ଚ ବାଧା
ଗୁରୁତମା
ସମାଜେ ବା ନିନ୍ଦା ପ୍ରଚରତି ସବେଗଂ
ବିଷମୟୀ ।
ଗୃହେ ଶୋକ-ଛାୟା ପ୍ରିୟଜନ-ବିୟୋଗାଚ୍ଚ
ବିଷମା
ଜଗନ୍ନାଥଂ ଶାନ୍ତଂ ନବଜଳଦକାନ୍ତଂ
ସ୍ମର ତଦା ॥୨॥

ଅର୍ଥ— ଯେତେବେଳେ ତୁମର କର୍ମକ୍ଷେତ୍ରରେ ଭୟଙ୍କର ବାଧା ଉପସ୍ଥିତ ହୋଇ ମନକୁ ଅଶାନ୍ତ କରାଇବ, (ଖଳଲୋକେ) ସମାଜରେ ତୁମକୁ ନିନ୍ଦିତ କରାଇବାପାଇଁ ମାରାତ୍ମକ ଅପପ୍ରଚାରରେ ଲାଗିପଡ଼ିବେ କିମ୍ବା ପ୍ରିୟଜନଙ୍କର ମୃତ୍ୟୁହେତୁ ଘରେ ଗଭୀର ଶୋକର ଛାୟା ବ୍ୟାପିଯିବ, ସେତେବେଳେ ଚିରପ୍ରଶାନ୍ତ ଏବଂ ନୂଆମେଘର କାନ୍ତିପରି କାନ୍ତିଯୁକ୍ତ ଜଗନ୍ନାଥଙ୍କୁ ଧ୍ୟାନକର ।

ଯଦାକାଶେ ମେଘାଃ ପ୍ରବଳ-ଭୟ-
ସଂପାଦନ-ପରାଃ
ତଡ଼ିତ୍-ପ୍ରେମାସକ୍ତା ବିକଟତର-
ବଜ୍ରଧ୍ୱନିରତାଃ ।

ତଥା ଭୀମା ବାତ୍ୟା ଭବନତରୁ-
ବିଧ୍ୱଂସ-ମୁଖରା
ଜଗନ୍ନାଥଂ ଶାନ୍ତଂ ନବଜଲଦକାନ୍ତଂ
ସ୍ମର ତଦା ॥୩॥

ଅର୍ଥ — ଯେତେବେଳେ ମେଘମାଳା ଆକାଶରେ ପ୍ରବଳ-ଭାବରେ ବ୍ୟାପ୍ତହୋଇ ମନରେ ଆତଙ୍କ ସୃଷ୍ଟି କରିବେ ଓ ବିଜୁଳିସହିତ ଜଡ଼ିତରହି ବଜ୍ରଧ୍ୱନିଦ୍ୱାରା ମନରେ ଭୟ ସୃଷ୍ଟି କରିବେ ଏବଂ ପ୍ରବଳ ବେଗରେ ପବନ ବହି ଘରଦ୍ୱାର ଓ ବୃକ୍ଷଲତାସବୁ ଭାଙ୍ଗିଦେବ, ସେତେବେଳେ ଚିରପ୍ରଶାନ୍ତ ଏବଂ ନୂଆମେଘର କାନ୍ତିପରି କାନ୍ତିଯୁକ୍ତ ଜଗନ୍ନାଥଙ୍କୁ ଧ୍ୟାନକର ।

ଯଦା ଦେବେଶେ ବୃଷ୍ଟି-ର୍ଜନୟିତ ଜଲୌଘଂ
ଚ ସରିତାଂ
ବିଶାଲା ଭୂଭାଗାଃ ପ୍ରବଲ-ଜଲ-ମଗ୍ନାଃ
ସପଦି ବା ।
ଅନାବୃଷ୍ଟ୍ୟୋ ଶସ୍ୟ-କ୍ଷୟ-ଜନିତ-ଚିନ୍ତା-
କୁଲ-ଜନାଃ
ଜଗନ୍ନାଥଂ ଶାନ୍ତଂ ନବଜଲଦକାନ୍ତଂ
ସ୍ମର ତଦା ॥୪॥

ଅର୍ଥ— ଯେତେବେଳେ ଭୟଙ୍କର ଭାବରେ ବର୍ଷାହେବ ଓ ନଦୀମାନେ କୂଳଲଙ୍ଘନ କରିବେ ଏବଂ ଗ୍ରାମ ଗ୍ରାମ (ସମଗ୍ର) ଦେଶର ବିରାଟ ଅଞ୍ଚଳମାନ ବନ୍ୟା ପ୍ଲାବିତ ହେବାରୁ ମନରେ ଭୟ ଓ ଦୁଃଖ ଜାତହେବ ଅଥବା ବର୍ଷାର ଅଭାବହେତୁ ଚାଷବାସ ନ ହୋଇପାରିବାଦ୍ୱାରା ଲୋକେ ଚିନ୍ତିତ ହୋଇ ଉଠିବେ, ସେତେବେଳେ ଚିରପ୍ରଶାନ୍ତ ଏବଂ ନୂଆମେଘର କାନ୍ତିପରି କାନ୍ତିଯୁକ୍ତ ଜଗନ୍ନାଥଙ୍କୁ ଧ୍ୟାନକର ।

**ଯଦା ଦୁଃଖଂ କ୍ଷୁଦ୍ର-ଦ୍ୱିଦଳ-ଜନ-ସଂଘର୍ଷ-**
**ଘଟନାତ୍**
**ତଥା ଯୁଦ୍ଧଂ ଦେଶେ ଭବତି ନରହତ୍ୟାଦ-**
**ସହିତମ୍ ।**
**ଅସନ୍ତୋଷୋ ରାଜ୍ୟେ ଜଳତି ଖଳୁ**
**ଦୁଃଶାସନ-ବଶାତ୍-**
**ଜଗନ୍ନାଥଂ ଶାନ୍ତଂ ନବଜଳଦକାନ୍ତଂ**
**ସ୍ମର ତଦା ॥୪॥**

ଅର୍ଥ— ଯେତେବେଳେ ଆପଣ ଦେଖିବେ ଯେ, କ୍ରୋଧରେ ଉନ୍ମତ୍ତହୋଇ ଦୁଇଦଳ ଲୋକ ସଂଘର୍ଷକରି ପିଟାପିଟି ହେବା ଦ୍ୱାରା ଆପଣଙ୍କ ମନରେ ଦୁଃଖଜାତ ହେବ କିମ୍ବା ଅପାରଗ ଓ

ଦୁର୍ନୀତିଯୁକ୍ତ ଶାସନହେତୁ ରାଜ୍ୟରେ ଲୋକମାନଙ୍କ ମଧ୍ୟରେ ଅସନ୍ତୋଷ ପ୍ରବଳ ହୋଇ ଉଠିବ ଅଥବା ନରହତ୍ୟା ପ୍ରଭୃତି ସମ୍ବଳିତ ଦେଶରେ ଯୁଦ୍ଧ ଘଟି ଲୋକଙ୍କୁ ଖିନ୍ନ ଓ ଦୁଃଖିତ କରିବ, ସେତେବେଳେ ଚିର ପ୍ରଶାନ୍ତ ଏବଂ ନୂଆମେଘର କାନ୍ତିପରି କାନ୍ତିଯୁକ୍ତ ଜଗନ୍ନାଥଙ୍କୁ ଧ୍ୟାନକର ।

